# କଥା ଓ ଗାଥା



କବି ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକ

# କଥା ଓ ଗାଥା

ଲେଖକ :
ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକ

ପ୍ରକାଶକ :
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ
କଟକ - ୨

# କଥା ଓ ଗାଥା

ପ୍ରଥମ ଭାଗ

ଲେଖକ :

**ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକ**

ବାଣୀ ବିତାନ, ଅନୁଗୁଳ

ପ୍ରକାଶକ :

ଗଙ୍ଗାଧର ତ୍ରିପାଠୀ

**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**

ବିନୋଦ ବିହାରୀ, କଟକ - ୨

ପରିମାର୍ଜିତ ସଂସ୍କରଣ - ୨୦୦୧

ମୁଦ୍ରଣ :

**ସଂଗୀତା ପ୍ରିଣ୍ଟର୍ସ, କଟକ - ୮**

**ମୂଲ୍ୟ : ଦଶଟଙ୍କା ମାତ୍ର**

# ସୂଚୀପତ୍ର

# ଟିପ୍ପଣୀ

**ସମରୀୟ —**

ବାଇବେଲର ସାମରିତାନ ଗଳ୍ପର ଅନୁସରଣରେ 'ସମରୀୟ' ଲେଖା ହୋଇଛି ।

**ରକ୍ତ ଓ ଦୁଗ୍ଧ —**

ଶିଖ୍‌ଗୁରୁ ନାନକଙ୍କ ଜୀବନର ଗୋଟିଏ ଘଟଣା ।

# ଶରଧା ବାଲି

୧

''ହଜି ଯାଇଥିଲେ ଖୋଜି ଆଣି ଦେବି
ଭାଙ୍ଗି ଯାଇଥିଲେ ଗଢ଼ାଇ ଦେବି
ମନ ଦୁଃଖ କରି ବସିଛ କାହିଁକି ?
ରାଇଜ ରାଣୀ ମୋ ଶରଧା ଦେବୀ ।
ଗଜପତି ରାଜା ବ୍ୟଥିତ ବଚନେ
ପଚାରିଲେ ସ୍ନେହ ସୁଆଗ ଭରି -
'' ମନ ଦୁଃଖ କରି ବସିଚ କିଆଁ ଗୋ
ରାଜାରେ ତୁମର ବ୍ୟଥିତ କରି ?''

୨

''ମନ ଦୁଃଖ କରି ବସିବି ନି ଭଲା
କଅଣ କରିବି କହିଲ ଦେଖି
ବାସନାର ରୂପ ଦେଇ ପାରିଲିନି
ମନର ବାସନା ମନରେ ଲେଖି ।
ମିଛେ ମିଛେ ମୁହିଁ ରାଇଜର ରାଣୀ
ତୁମେ ତ ମହାନ୍ ରାଇଜ-ସାଇଁ,
ମନେ ମନେ ଯେଉଁ କଳପନା କଲି
ରୂପ ତା'ର ଦେଇ ପାରିଲି ନାହିଁ ।''

୩

'' ହୃଦୟର କଥା ଗୋପନେ ରଖିଚ
କହିଚ କି କେବେ ହୃଦୟ ଖୋଲି ?
କେମିତି କହୁଚ ପ୍ରାଣର ପ୍ରିୟାଗୋ
ତୁମର କଥା ମୁଁ କଲିନି ବୋଲି ।
କୁହ ତେବେ କୁହ, କୁହ ଏଇ ଲାଗେ
କଅଣ ତୁମର ଗୁପତ ମନ
ସାଙ୍ଗେ ସାଙ୍ଗେ ତାହା କରିବା ପାଇଁକି
ରହିଅଛି ମୁହିଁ ତୁମର ଜନ ।

୪

" ଆଷାଢ଼ ମାସର ରଥ ମଉଛବ
ବଡ଼ଦାଣ୍ଡ ପରେ ଜୀବନ ଝଲେ
କେତେ ମୁଲକର କେତେ ଲୋକ ଆସି
ଠୁଳ ହେଉଛନ୍ତି ଏ ନୀଳାଚଳେ ।



ରଥ ଚାଲୁଅଛି ଜଗନ୍ନାଥଙ୍କର
ବଳଭଦ୍ରଙ୍କର ସୁଭଦ୍ରାଙ୍କର
ଚମକି ଉଠୁଚି ଆକାଶ ଧରଣୀ,
ଝଲକି ଉଠୁଚି ଜଳଧି-ଜଳ ।

୫

ସାମନାରେ ପରା ବଳଗଣ୍ଡି ନଈ
ଦୁଇ ଭାଗ କରି ଦେଇଚି ପଥ
ଏଇଠୁ ବାହାରି ଏ ପାଖେ ରହୁଚି
ସେ ପାଖରେ ପୁଣି ରହୁଚି ରଥ ।
ଠାକୁର ସେଇଠି ରଥରୁ ଓହ୍ଲାଇ
ଚଢୁଛନ୍ତି ଆର ରଥରେ ପୁଣି
ସବୁ ବରଷ ତ ଦେଖୁଚ ଏ କଥା
କେଉଁ ପରି ତୁମେ ରହିଚ ତୁନି ?

୬

କରିବାର ଯଦି ମନ ଅଛି ତବ
ରାଇଜର ରାଜା, ମୋ ପ୍ରାଣପ୍ରିୟ
ଆଗରେ ଅଛି ଯେ ବଳଗଣ୍ଡି ନଈ
ବାଲିରେ ତାହାକୁ ପୋତାଇ ଦିଅ ।
ମଝିରେ ତ ଆଉ ରହିବନି ବାଧା
ସିଧା ସିଧା ହେବ ଆମର ପଥ
ଜଗନ୍ନାଥଙ୍କର ବଳଭଦ୍ରଙ୍କର
ସୁଭଦ୍ରାଙ୍କର ତ ଚାଲିବ ରଥ ।"

୭

କେଡ଼େ ବଡ଼ କଥା ଚାପି ରଖିଥିଲ
ଆଗରୁ କାହିଁକି କହିଲ ନାହିଁ ?
ଠାକୁରେ କେମିତି ଦଣ୍ଡ ପାଉଚନ୍ତି
ଭାଲୁଣି ତୁମର ତାହାଙ୍କ ପାଇଁ ।



ଠାକୁରଙ୍କ କଥା କଲପିଛ ଯାହା
ମନରେ ମୋହର ନ ଥିଲା ଜାଗି
ଆଜିଠାରୁ ନିଶ୍ଚେ ତୁମ କଥା ହେବ
ବାଲିବନ୍ଧ ହେବ ତୁମରି ଲାଗି । ''

୮

ରାଜା ଆଜ୍ଞା ଦେଲେ, ଲୋକ ଠୁଳ ହେଲେ
ବାଲି ବୁହା ହେଲା ସମୁଦ୍ର ଧାରୁ,
ବଳଗଣ୍ଡି ନଈ ପୋତା ହୋଇଗଲା
ରହିଥିଲା ଯାହା ବହୁତ କାଳୁଁ ।
ମାଉସୀ ମାଆଙ୍କ ଦେଉଳ ପାଖକୁ
ରଥ ସିଧା ସିଧା ଗଲାରେ ଚାଲି,
ଶରଧାଙ୍କ ଯୋଗୁଁ ବାଲି ବନ୍ଧ ହେଲା,
ଲୋକେ କହୁଛନ୍ତି 'ଶରଧା -ବାଲି ' ।



# ବୈଶାଖ ପୂର୍ଣ୍ଣିମା



ଲୁମ୍ବିନୀ ବନେ ଲମ୍ବାଇ ଅଛି
        ଶାଳ ତରୁମାନ ତାର ଡାଳ
ଭରା ସଉରଭ ଢାଳି ଦେଉଅଛି
        ଅକାଳ କୁସୁମ ମାଳ ମାଳ ।
ଜନ୍ମିଲା ତହିଁ
        ଅହିଂସାର ଯେ ଅବତାର
ଆଲୋକିତ କଲା
ପୁଲକିତ କଲା
        ଯୁଗ ଯୁଗ ଏଇ ସଂସାର ।

୨

ନୈରଞ୍ଜନା ତଟିନୀର କୂଳେ
ବନଭାଗେ
ସେଇ ବୈଶାଖ ପୂର୍ଣ୍ଣିମା ତଳେ
ପ୍ରେମ ରାଗେ
ନିଭୃତ ସେଇ ବିବୃତ ସେଇ
ବନ ଦେଶେ
ବୋଧି ତରୁ ତଳେ ବୋଧି ଲାଭକଲେ
ତପ ଶେଷେ ।

୩

ବୈଶାଖ ମାସ ପୂର୍ଣ୍ଣିମା ତିଥି
ବନମାଳ
ଚିରଦିନ ପାଇଁ ନିମୀଳିତ କଲା
ଆଖି ତା'ର ।
ଯେଉଁ ମହାଦାନ ଦେଇଗଲା ଏଇ
ଧରା ତଳେ
ଦୀପ୍ତି ତାହାର କାଳ କାଳ ଛଳେ
ଆଜି ଝଳେ ।

୪

ବୈଶାଖ ମାସ ପୂର୍ଣ୍ଣିମା ତିଥି
ଶୁଭବାହ
ଆମ ଏ ଜୀବନେ ଆମ ଏ ଭୂବନେ
ପୂଣ୍ୟାହ ।
ଅବିନଶ୍ୱର ବୁଦ୍ଧଚରଣ
ପ୍ରାନ୍ତରେ
ନମୁଛୁ ସତତ ନମୁଚୁ ବିନତ
ଅନ୍ତରେ ।



# ସମରୀୟ

''ଘୋଡ଼ା ଚଢ଼ି ବାବୁ କିଏ ହୋ ଯାଉଚ଼ ?
ଦୟା କରି ଟିକେ କୁହ
ଭାରି ଶୋଷ ମତେ, ଭାରି ଶୋଷ ବାବୁ
ପାଣି ମୁନ୍ଦିଏ ଦିଅ ।''

ଜେରୁ ଜେଲମର ଧର୍ମଯାଜକ
ଯାଉଥିଲେ ସେ ପଥରେ
କାକୁତି ମିନତି ଶୁଣିଲେ ନାହିଁ ତ
ଅନାଇଲେ ନାହିଁ ଥରେ ।

" ଗୀତ ଗାଇ ବାବୁ କିଏ ହୋ ଯାଉଚ ?
ଦୟା କରି ଟିକେ ରୁହ,
ଭାରି ଶୋଷ ମତେ, ଭାରି ଶୋଷ ବାବୁ
ପାଣି ମୁନ୍ଦିଏ ଦିଅ । "

ଜେରୁଜେଲମର ଦେଉଳ ଗାୟକ
ଯାଉଥିଲେ ସେଇ ବାଟେ,
ବାଟେ ବାଟେ ଗଲେ ଅନାଇଲେ ନାହିଁ
ସଦୟ ନୟନ ପାତେ ।

" ଗଧ ଚଢ଼ି ଭଲା କିଏ ହୋ ଯାଉଚ ?
ଦୟା କରି ଟିକେ ରୁହ
ଭାରି ଶୋଷ ମତେ, ଭାରି ଶୋଷ ବାବୁ
ପାଣି ମୁନ୍ଦିଏ ଦିଅ । "

କିଏ ସେ ଲୋକଟି ମଳିନ ବସନ
ପାଖରେ ବସିଲା ଆସି ।
କହିଲା - "ଭାଇ ମୁଁ ଇହୁଦୀ ଦେଶର
ସମରୀୟା - ଅଧିବାସୀ ।



ଦେଶରେ ମୋ ଜାତି ଘୃଣ୍ୟ ଅଛବ
ସମାଜରେ ସ୍ଥାନ ନାହିଁ
ସେବା କରିବାକୁ ଅଭାଜନ ମୁଁ ଯେ
କି କରି ପାରିବି ଭାଇ ? ''

'' ଜେରୁଜେଲମ୍‌ରୁ ଯାଉଥିଲି ମୁହିଁ
ପେରିକୋ ସହର ମୁଖେ
ଡକେଇତ ହାତେ ଆହତ ହୋଇ ମୁଁ
ପଡ଼ିଅଛି ମହାଦୁଃଖେ ।

ଜୀବନ ମୋହର ଯାଉଅଛି ଏଇ
ବଞ୍ଚାଅ ମତେ ଭାଇ
ମୁହିଁ ଯେ ଇହୁଦୀ, ତୁମେ ସମରୀୟ
ମନରେ ବିଚାର ନାହିଁ ।

ଆମକୁ ଯେ ପ୍ରଭୁ ଜନମ ଦେଇଛି
ଆମେ ସବୁ ତା'ର ପୁଅ
ତାହାର ଘର ଏ ସଂସାର ତଳେ
ଭାଇ ଭାଇ ଆମେ ନୁହଁ ?''

ସମରୀୟ ତାକୁ ଜଳ ଆଣି ଦେଇ
କ୍ଷତ ଜାଗା ପୋଛି ଦେଇ
ନିଜ ଜନ ଭଳି ସେବା କଲା ତାକୁ
ସଦୟ ହୃଦୟ ଦେଇ ।

ଗଧପରେ ତାକୁ କୋଳରେ ବସାଇ
ଅପାର ହରଷ ସୁଖେ
ଯାତ୍ରା କରିଲା ଅଦୂର ସେ ଏକ
ପାନ୍ଥଶାଳାର ସୁଖେ ।



ବାହାରେ ଇହୁଦୀ, ସମରୀୟ ସିନା
ଭିତରେ ସମାନ ଦୁହେଁ
ଯେ ଲହୁ ଖେଳୁଛି ସବୁରି ଶିରାରେ
ତାହା କି ନାଲିଆ ନୁହେଁ ?



# ପିଲା ଯେ କଅଣ ଜଗତରେ

କୁମାର ସ୍ୱାମୀ ବୋହୂକୁ ବୋଇଲେ -
"ଆଲୋ ମାଆ ,
ଗାନ୍ଧିଜୀ କାଲି ଅତିଥି ହୋଇବେ
ଆମ ଘରେ
ଭଲ କରି ମନେ ରଖିଥାଆ ।

ଖାଇବା ପିଇବା ତାଙ୍କର ଯାହା
ବୁଝିବୁଟି
ତହିଁରେ ଯେମିତି ହେବନି ତୋହର
କିଛି ତ୍ରୁଟି ।

ତାହାରି ଉପରେ ନିର୍ଭର କରେ
ଆମରି ଯା କିଛି ମାନ ଥାନ
ତହିଁରେ ଟିକିଏ ରଖିଥିବୁ ମାଆ,
ମନ ଜ୍ଞାନ ।

ଏତେ ବଡ଼ ଲୋକ ଅତିଥି ହୋଇବେ
ଆମ ଘରେ
ତୋତେ ଲାଗିଲା ଏ ନିଶ୍ଚିନ୍ତ ମୁଁ
ମୋ ମନରେ
କଅଣ ଖାଇବେ, କଅଣ ପିଇବେ,
ଟିକି ନିଖି କରି ସବୁ କଥା,
ଜାଣୁଛୁ ତ ମାଆ ଏ ସବୁ କଥାରେ
ତୋହର ତ ଅଛି ପାରଗତା ।''

ତହିଁ ଆର ଦିନ ଗାନ୍ଧିଜୀ ଆସି
ମିଳିଗଲେ,
ଅତିଥିଙ୍କର ସତ୍କାର ଭାର
ବୋହି ନେଇଗଲେ ସରାଗରେ

ଖାଇବାକୁ ଯେବେ ବସିଲେ ବାପୁଜୀ
ଖାଦ୍ୟ ଜିନିଷ ହେଲା ବଢ଼ା,
ସେତିକି ବେଳକୁ ଛୋଟ ପୁଅ ତହିଁ
ଗୋଳ୍ କଲା ।



ପିଲାଟି ଗାଲରେ ଚାପୁଡ଼ା ଗୋଟାଏ
ଚଟ୍ କରି ଥୋଇ ଦେଲେ ବୋହୂ
ଭୋଓ ଭୋଓ ପିଲା କାନ୍ଦି ଉଠିଲା
" ରହ ରହ ଆରେ ହୋଉ, ହୋଉ ।

ଆହୁରି ଚାପୁଡ଼ା ଖାଇବାକୁ ମନ
ରହ ରହ,
ତୋହରି ଜିନିଷ ଅଣାଇ ଦେବି ରେ
କହିଲି ତ ଆରେ ହଅଁ , ହଅଁ । "
ବାପୁଜୀ ଜାଣିଲେ, ଦୁଃଖେ ବୋଇଲେ
" ଆଲୋ ମାଆ,
ଖାଇବା ମୋହର ବନ୍ଦ ଏଇଠି,
କଲୁ ଯାହା ।"

ଏତିକିରେ ତହୁଁ ବୋହୂର ହଲକ
ଗଲା ଶୁଖି
ରାଣ ଦେଲା ପରି ବନ୍ଦ ହୋଇଲା
ଧୂକି ଧୂକି ।

" ଏତିକି ବେଳକୁ ମାଇଲୁ ତୋହର
ପିଲାଟାକୁ
ପିଲା ଯେ କଅଣ ଜଗତରେ
ଗ୍ୟାନ ହେବ କେବେ ବୁଝିବାକୁ ?
ପିଲା ଯେ କଅଣ ଜଗତରେ -
'ବୁଝି'ପାରିଲୁନି କେମିତି ମାଇଲୁ
ତୋ ହାତରେ ?"

ପୁଅ ତ ଦେଖିଲା
ଆପଣା ଆଖିରେ,
ଶୁଣିଲା ତ ପୁଣି ନିଜ କାନେ,
କଅଣ ବୁଝିଲା
ମନେ ମନେ ତାର
ପ୍ରାଣେ, ପ୍ରାଣେ

———



ବାପୁଜୀଙ୍କର ପାଦ ତଳେ ପଡ଼ି
କାନ୍ଦି କାନ୍ଦି ଜଣାଇଲା -
''ତୁମେ ନ ଖାଇଲେ, ମୁହିଁ ଖାଇବିନି
ମୁରବି ପରିକା ମଣାଇଲା ।

ମୁଁ କହୁଚି ବାପୁ ତୁମେ ଖାଅ'
ମତେ କହ ଆଉ କଣ ଚାହଁ ?''

'' ଭବିଷ୍ୟତରେ
ପିଲା ଯେ କଅଣ ଜଗତରେ,
ଏଇ ଲାଗେ ମୁଁ ତ
କହି ଦେଇ ଥିଲି ଶକତରେ ।
ସେଇ କଥା ଘେନି
ମତେ ତ ଜିଣିଲୁ ସାଥେ ସାଥେ

ପରାଜୟ ମୋର
ଆଣି ଦେଲୁ ଏବେ ତୋର ହାତେ,
ସାଥେ ସାଥେ ତୁହି
ଜିତିଲୁ ମତେ ରେ
ବାଳବୀର
ତୋ ବୋଲ ମାନିବି
ଏଇନେ ଖାଇବି
କଲି ଥିର । ''

ଦେଖିଲୁ ମାଆଲୋ,
ତୋହର ଏ ପିଲା
ଭବିଷ୍ୟତରେ ହେବ ବଡ଼
ସଉରଭ ଦେବ
ଗଉରବ ଦେବ
ବର୍ତ୍ତମାନ ଏ ଫୁଲ କଢ଼ ।

ଭବିଷ୍ୟତରେ ହେବ ଫୁଲ
କିଏ ବୁଝିବ ନି ତାର ମୂଲ ?
ତା' କଥା ମାନିବି ଆଲୋ ମାଆ,
ତାକୁ ଦେଏ ସିଏ
ଏଇନେ ଖାଇବ
ମୁଁ ପୁଣି ଖାଇବି
ଖାଇବାର ଦେଇଥିଲୁ ଯାହା ।''



କୁମାର ସ୍ୱାମୀ ଦେଖୁଥିଲେ ସବୁ
ଶୁଣୁଥିଲେ
କଅଣ ପ୍ରଳୟ ହୋଇଗଲା ବୋଲି
ଗୁଣୁଥିଲେ ।

ଆଖି ପିଛୁଳାକେ
ଯେଉଁ ଭାବେ ହେଲା
ସମାଧାନ
ମନେ ମନେ ସିଏ
ସ୍ମରଣ କରିଲେ -
''ଭଗବାନ ଆହେ ଭଗବାନ ।''



ଭିକ ମାଗୁଥିଲି -
ବଞ୍ଚାଇ ଦେଲ ଆଜ୍ଞା ମତେ ।

ବିଦ୍ୟାସାଗର ଯାଉଥିଲେ ଦିନେ
ବଜାର ଭିତରେ ଦୋକାନ ଆଗେ,
ତରବର ହୋଇ ଟୋକାଟିଏ ଆସି
ଲୋଟିଲା ତାଙ୍କ ଚରଣ ଭାଗେ ।

ତାହାର ସେ ଭାବ, ତାର ସନମାନ
ଦେଖି ମହାମନା ହୋଇଲେ କାବା,
"କିଏ ଆରେ, ତତେ ଚିହ୍ନି ପାରୁନି
କଅଣ ଚାହୁଁଛୁ, କହ ତ ବାବା ?"

" ଚିହ୍ନିଲା ଭଳି ନୁହଇ ତ କିଛି
କଅଣ ଏଇନେ ଚାହୁଁନି ଜମା,
ଜୀବନରେ ମୁହିଁ ଯାହା ପାଇଅଛି
ଆଉ କି ଚାହିବି ହେ ମହାତମା ?"

"ମୋହର ତ କିଛି ମନେ ପଡୁନାହିଁ,
ଫିଟାଇ କହିଲେ ଜାଣିବି ପରା ।"

"ଆପଣାର କଥା ଭୁଲିଯିବି ମୁହିଁ
କେମିତି ଭଲା ଯେ କେମିତି ଭଲା ?

ବରଷକ ତଳେ ଯାଉଥିଲ ଦିନେ
ଆମର ଏଇ ଯେ ବଜାର ପଥେ
ହାତ ପାତି ମୁହିଁ ମାଗିଲି ବିକଳେ
ଅଣାଏ ପଇସା ଦିଅ ତ ମତେ ।



ଦୁଇଦିନ ହେଲା ପେଟରେ ମୋହର
ଅନ୍ନ ପଡ଼ିନି, ଉପାୟ ନାହିଁ,
ଅଣାଏ ପଇସା ମିଳିଗଲେ ଦାତା
ଏଇଲେ କଅଣ ଖାଇବି ଯାଇ ।

" ଅଣାଏ ପାଇଲେ ଆଜି ଚଳିଯିବ,
କାଲିକି କଅଣ କରିବୁ ପୁଣି ?"

" ଆଉ କାହା ଆଗେ ହାତ ପତାଇବି ।"
କହିଲା ଟୋକାଟି ସେକଥା ଶୁଣି ।

"ଚାରିଅଣା ଦେଲେ କଅଣ କରିବୁ ?"

" ଖାଇବି ତହିଁରୁ ଅଣାଏ ଦେଇ,
ତିନି ଅଣାର ମୁଁ କମଳା କିଣିବି
ଗଳିରେ ବୁଲି ତା ବିକିବି ନେଇ । "

" ଟଙ୍କାଏ ଦେଲେ କଅଣ କରିବୁ ?
ଟଙ୍କାଏ ନେଲେ କରିବୁ କ'ଣ ?"

‘‘ଅଣାକରେ ଖାଇ ବାକି ପଇସାରେ
ଫଳ ବେପାରରେ ଦେବି ମୋ ମନ
ହୀନିମାନ ହୋଇ ଭିକ ମାଗିବି ନି
କାରବାର କରି ପୋଷିବି ପେଟ,
ଭିକ ମାଗିବି ନି, ଦେବ ଯଦି ଦିଅ
ମୋହର ପରମ ଭାଗ୍ୟ ସେ ତ ।

ଆଈଙ୍କା ପାଖରୁ ଟଙ୍କାଏ ନେଇ
ମନରେ ମୋହର ବିଚାର କରି

କମଳା କିଣିଲି, କମଳା ବିକିଲି,
ବଜାର ହାଟରେ ବେପାର କଲି ।

ବିକା ବିକି କରି ଉଦର ପୋଷିଲି,
ଲାଭ ଉଠାଇଲି, ପାଇଲି ଧନ,

କାରବାର କରି, ରୋଜଗାର କରି
ତୃପ୍ତ ହୋଇଲା ମୋହର ମନ ।



ଆଜ୍ଞା ଯୋଗେ ମୁଁ କାରବାର କରି
ଫଳର ଗୋଟିଏ ଦୋକାନ କଲି,
ବଜାର ଭିତରେ ଅନ୍ୟ ସାଥିରେ
ଚଳିଲି ଅନ୍ୟ ଦୋକାନୀ ଭଳି ।

ମୋର ଦାତା ଆହେ ଦୟାକରି ଏବେ
ମୋର ଦୋକାନକୁ ଟିକିଏ ଚାଲ,
ଶିରୀ ପାଦ ଦେଲେ ଆହୁରି ଆହୁରି
ତାଜା ହେବ ପରା ମୋ'କପାଳ ।''

ହସି ହସି ତହୁଁ ବିଦ୍ୟା ସାଗର
ମରମ ଭିତରେ ପୁଲକ ବହି,
ଟୋକାଟିର କଥା ମନରେ ବିଚାରି
ତାହାରି ସାଥିରେ ଚଳିଲେ ତହିଁ ।

ତା'ଙ୍କ ପାଦକୁ ଜଳରେ ଧୋଇ ସେ
ବୋଳିଲା ନେଇ ତା ଆପଣା ଶିରେ,
ବାକି ଯାହା ରଖି ଅତି ଉତ୍ସାହେ
ସିଂଚିଲା ତାହା ଦୋକାନଟିରେ ।

ଦୁଇଟି କମଳା ଦାତା ହସ୍ତରେ
ଯୋଡ଼ ହସ୍ତରେ ସଂପି ଦେଇ
''କଅଣ ଆଜ୍ଞା, କଅଣ ଭାବୁଚ ?''
ବଚନ ବାଢ଼ିଲା ଉଷତ ହେଇ ।

'' ନିଅ ହେ ଆଜ୍ଞା ଶିରୀ ହସ୍ତରେ
ମୋହର ନୁହେଁ ଏ ତୁମର ଦାନ
ତୁମରି ଦୟାର ପାତ୍ରକୁ ଏବେ
କରି ଦିଅ ଟିକେ ଭାଗ୍ୟବାନ । ''

ବିଦ୍ୟାସାଗର ମମତାର ଭାଷା
ଶୁଣାଇଲେ ତାକୁ ଉଷତ ସ୍ୱରେ -
"ଉପହାର ତୋର କମଳା ଦୁଇଟି
ଘେନୁଅଛି ଅତି ପୁଲକ ଭରେ ।

ଦୋକାନ ତୋହର ବଢ଼ାଇବା ପାଇଁ
ଆପଣା ମନରେ ଚାହୁଁଚୁ ଯେବେ
ଆଉ ବେଶି କିଛି ଟଙ୍କା ମୁଁ ଦେବି
ଦରକାର ହେଲେ ଦେବି ରେ ଏବେ ।"

ଭିକାରୀ ହୋଇ ମୁଁ ଭିକ ମାଗୁଥିଲି,
ବଞ୍ଚାଇ ଦେଲ ଆଜ୍ଞା ମତେ,
ଭିକ ଦେଇ ଆଉ ଭିକାରୀ କରନି,
କଲ୍ୟାଣ କର ମୋର ଏ ପଥେ ।"



# ରକ୍ତ ଓ ଦୁଗ୍ଧ

''ଉପାୟ ନାହିଁ ତ ଆଉ
　　　　ବାର୍ତ୍ତାବହ, କହ ଏବେ ଯାଇ,
ଦାଦାଙ୍କର ନିମନ୍ତ୍ରଣ
　　　　ଆଜି ମୁହିଁ ରଖି ପାରୁନାହିଁ ।

କର୍ମକାର ବନ୍ଧୁ ଜଣେ
　　　　ଆଜି ସଞ୍ଜେ ଡାକିଚନ୍ତି ମତେ,
ନାମ ସଂକୀର୍ତ୍ତନ ପାଇଁ
　　　　ତାହା ଏଡ଼ି ପାରିବି କେମନ୍ତେ ?'

ପିତୃବ୍ୟ ବାରତା ପାଇ
　　　　ରୋଷଭରେ ବୋଇଲେ ବଚନ -
''ଦୁର୍ଗତ ନାନକ ଆଜି,
　　　　ରଖିଲା ନି ମୋର ନିମନ୍ତ୍ରଣ ।

ବୁଝିଲା ନି କାହା ପୁତ୍ର
କାହାର ସେ ଉତ୍ତରାଧିକାରୀ
କେଉଁ ବଂଶଧର ସିଏ
ଆଜି ହେଲା କେଉଁ ପଥଚାରୀ ।
ବିଳାସର ଆୟୋଜନ,
ଆମୋଦର ଉପଚାର ତେଜି
ଦୀନ ହୀନ ଜନ ମେଳେ
ଘୁରୁଅଛି କେଉଁ ଶ୍ରେୟ ହେଜି ।

ବୁଝିଲା ନି କିଏ ମୁହିଁ,
ଏ ଖଣ୍ଡର କେଡ଼େ ଜମିଦାର
ରଖିଲା ନି ମୋର ମାନ,
ବଡ଼ ହେଲା କର୍ମକାର ତାହାର

ବାର୍ତ୍ତାବହ କି ଭାବୁଛ ?
ପୁଣି ଯାଅ ତା ପାଖକୁ ଯାଅ,
ଆସିବାକୁ ପୁଣି କହ
ଏଇ ମୋର ଶେଷ ଅଭିପ୍ରାୟ ।''

ଡଗର ଦେଖିଲା ଯାଇ
କର୍ମକାର କୁଟୀର ପ୍ରାଙ୍ଗଣେ
ନାନକ ବିମୁଗ୍ଧ କଣ୍ଠେ
ମାତିଛନ୍ତି ନାମ ସଂକୀର୍ତ୍ତନେ ।

ଜଣାଇଲା ଅଭିପ୍ରାୟ -
“ଭୋଜନର ଦିବ୍ୟ ଆୟୋଜନ,
ହୋଇଅଛି ତୁମ ପାଇଁ
ସବୁ ଏବେ ହେବ ଅକାରଣ ।”
“ଏ ଲାଗେ ଆସୁଚି ଫେରି ।”
କହି ଦେଇ କୋମଳ ବଚନେ
ଚାଲି ଗଲେ ବଇରାଗୀ
ତତ୍ ସଙ୍ଗେ ସସ୍ମିତ ବଚନେ ।

“ଡକାଇଲେ ପୁଣି କିପାଁ ?”
ନମ୍ର ଭାବେ ବୋଇଲେ ନାନକ
“ସମ୍ବାଦ ଯେ ଦେଇଥିଲି
ଦେଇନି କି ସମ୍ବାଦ ବାହକ ।”

ପିତୃବ୍ୟ ବୋଇଲେ , “ବାବା
ତୋହ ଲାଗି ଉତ୍ସୁକ ମୋ ମନ
ଆୟୋଜନ କରିଅଛି
ସାଥି ହୋଇ କରିବା ଭୋଜନ । ”

“ଆଜି ଏଥି କେଉଁପରି
ସାଥି ହୋଇ କରିବା ଭୋଜନ
କର୍ମକାର ବନ୍ଧୁ ଘରେ
ଭୁଞ୍ଜିବାକୁ ଦେଇଚି ବଚନ । ”

''ନାନକ ତୁ ଭାବୁଚୁ
କି ଖାଦ୍ୟ ତୁ ପାଇବୁରେ ତହୁଁ
ରୁଚି ଶୁଚି ଭୁଲି ଯାଇ
କି କଥା ଏ ଯାଉ ଅଛୁ କହି ?''

''କାହିଁ ପାଇଁ ଦାଦା ତୁମେ
ଦୁନିଆକୁ ହୀନ ମନେ କର
ତୁମେ ଯେଉଁ ଖାଦ୍ୟ ଦେବ
ତାହାଠାରୁ ନିଶ୍ଚୟ ତା ଭଲ ।''

''ମୋହ ଖାଦ୍ୟ ଠାରୁ ଭଲ
କି କହୁଚୁ କି କହୁଚୁ ଆରେ
ପ୍ରମାଣ ତାହାର ଏବେ
ଦେ' ମୋତେ ଦେ' ଏଇଠାରେ ।''

''ପ୍ରମାଣ ଦେଉଚି ତାର
କହି ଦେଇ ନିଜେ ଗଲେ ଚଳି
ନାନକ ଫେରିଲେ ପୁଣି
ଦରପୋଡ଼ା ରୁଟି ଖଣ୍ଡେ ଧରି ।

''ଦିଅ ତୁମ ଖାଦ୍ୟ ଏବେ
କହୁଁ କହୁଁ ପିତୃବ୍ୟ ନିର୍ଦ୍ଦେଶେ
ରଜତ ଥାଳୀରେ ଖାଦ୍ୟ
ଥୁଆ ହେଲା ଆଖିର ନିମେଷେ ।

ହାତକରେ ଥିଲା ରୁଟି
ଆର ହାତେ ତୋଳି ଦେଲେ ପୁରି
ନାନକ ମୁଠାରେ ଧରି
ଜୋର କରି ଦେଲେ ତା ଚିପୁଡ଼ି ।

ବିସ୍ମୟେ ଦେଖିଲେ ଜନ
କି ଝରିଲା ଉଭୟ ମୁଠିରୁ
ପୁରିରୁ ଝରିଲା ରକ୍ତ
ଦୁଗ୍ଧ ଧାର ଝରିଲା ରୁଟିରୁ

ପିତୃବ୍ୟ କହିଲେ, ''ବାବା,
ଦେଖୁଅଛି ଦିବ୍ୟ ତୁମ ମନ
ଦୁଗ୍ଧ ସମ ସ୍ୱଚ୍ଛ ଶୁଭ୍ର
ନିଃସ୍ୱର ଓ ଈଶ୍ୱର ଜୀବନ ।''